ଓଁ ଉପେନ୍ଦ୍ର ଭଞ୍ଜଙ୍କ ବିରଚିତ

# ଭିଂ ପଢ଼ି ଚଉତିଶା ।

## ବା ଶ୍ରୀମତୀଙ୍କ ବିରହମାନ ।

ଶ୍ରୀ ଗୋବିନ୍ଦ ସାହୁଙ୍କ ଦ୍ୱାରା ପ୍ରକାଶିତ ।



✻ ପ୍ରଥମ ସଂସ୍କରଣ ✻

PRINTED BY S. AMINUL I.
AT THE ORISSA KOHINOOR PRESS,
Choudhury Bazar
Cuttack
1929

ମୂଲ୍ୟ ୫ [redacted] ଅଣା ମାତ୍ର

# ଭୂପତି ଚଉତିଶା ।

## ବା

## ଶ୍ରୀମତୀଙ୍କ ବିରହମାନ ।

କହଇ ଦୂତୀ ରାଧିକା କର ଧରି ଶ୍ରୀକୃଷ୍ଣ ବିରହ-ଦୁଃଖ ।
କେଉଁ ଦୋଷକୁ ଦ୍ୱେଷ କରି କାନ୍ତକୁ ହେଲୁ ତୁ ଏଡ଼େ ବିମୁଖ ॥
କେ ସେ କାହାକୁ କେତେ ଦୂର ଅନ୍ତର ଏହା ନ ବିଚାରୁ ମନେ ।
କଞ୍ଜ କୁମୁଦ କାନ୍ତ ରବି ଚନ୍ଦ୍ରମା ବୋଲନ୍ତି ଜଗତଜନେ ॥
କାନକଣ୍ଠା କଣ୍ଠ କା କାନ କାଟିଛି କେହି ନ କରେ ବିବେକ ।
କଳଙ୍କ ଦିଅନ୍ତି ଅକଳଙ୍କ ଜନେ ଏହିମତ ଅବିବେକ ।
କଲେହେଁ ଦୋଷ ନିଜ ଦାସେ କରିବା ଭୟ ଦେଖାଇ ସଦୟେ ।
କଠିନ କୋମଳ ବାହାର ଅନ୍ତର କଉଦସି ଫଳ ପ୍ରାୟେ । ୧ ।
ଖଣ୍ଡିହିଁ ଖଣ୍ଡନ କରେ ପ୍ରାଣୀ ପ୍ରାଣ କୋଇଲା ସଙ୍ଗତେ ଯଥା ।
ଖାଉଥାଇ ଯେହ୍ନେ କୁକ୍ଷ କୋକିଳ ବାୟସ ବସାରେ ପଢ଼ ।
ଖଟହିଁ ଭଇ ଭଲଲୋକେ କହନ୍ତି ଖିଆପଥ ଆଗ ଗୃହଁ ।
କ୍ଷାରସମୁଦ୍ର ସଙ୍ଗମେ ଗଙ୍ଗା ଯେହ୍ନେ ଲବଣଭାବକୁ ବହି ।
କ୍ଷୀର ନୀର ଯେହ୍ନେ ଅଭେଦ ପୀରତି ଖାର ମିଶିପାଏ ଚୂଡ଼ ।
ଖଟ ଗୋବିନ୍ଦ ବିଷୟୂରେ ଶୁଣିଲେ [illegible] ॥
ଖଣ୍ଡିଏ ଲେମ୍ବୁଟ ମିଶିଲେ କର୍ପୂର [illegible] ସରି ।
ଖଳମନ୍ଥୀ ବୋଲେ କ୍ଷଣକେ ନାଶିଲୁ ମାନଗୋବିନ୍ଦର ଶିଷ ।
ଗୁପତ ଗାଢ଼ ପୀରତି ହୁର କଲୁ କଟାକ୍ଷ ଥାଉ ଦୂରୀ ଦୂରେ ।
ଗ୍ରୀଷମଋତୁ ରବି ପ୍ରାୟେ ପଦ୍ମକୁ [illegible]ଗ ନ ଗୁହ୍ମିଲୁ ତାରେ ।
ଗାଲହିଁ ଦେଇ କଥାଏ ନ କହିଲୁ ଗୋବିନ୍ଦ ଏହି ତା ସୋଷେ ।
ଗର୍ଜ୍ଜନ ବଜ୍ରଘାତ ସହେ ଚାତକ [illegible] ଅଭିଳାଷ ॥
ଗୁଣଗ୍ରାହୀ ହୋଇ ଦୋଷଗ୍ରାହୀ ହେଲୁ [illegible]
ଗାଢ଼ ସମ୍ପଦ ବୁଡ଼ି ପୋଡ଼ି ଗଲେହେଁ କେଣ୍ଟତେଡ଼ ପାଣି ପାବକ ॥

ଗଣି କଲ ହର ପୀରତି ହୀନ ତୋ ଅଙ୍ଗ ଅପୂର୍ବ ତନ ।
ଗଳାରେ ଲଗ୍ନ ଲଗ୍ନ ହେଲୁ ମଳିନ ଟଙ୍କିକମାଳା ଯେସନ । ୩ ।

ଘୃଣା ଘର ପ୍ରାୟେ ଦୋଷ ଯେବେ ହେଲ ଘେନଥିବୁ ନକ ତାହିଁ ।
ଘଷି କଷି ହେମ ଜାଣିଲେ ତାହାକୁ କମାରଶାଳେ କି ଦାହ ॥
ଘୋଷୁଥାଇଁ ତୁମ୍ଭ ହୁହିଁଙ୍କ ପୀରତି ସୂର୍ଯ୍ୟାହିକୁ ଅପ୍ରମିତ ।
ଘଡ଼କେ କୁମ୍ଭଜ ପ୍ରାୟେ ଚତୁର କର ଆଚମନ କଲୁ ଭୂତ ।
ଘେନଥିଲୁ ଚିତ୍ତେ ଚେତାଇଲ ତାହା ସମାନ କର ଯାହାକୁ ।
ଘଡ଼କେ ଘେନିଲ ଫୁଲ ପ୍ରାୟେ କଲୁ ଏତେ ଅନ୍ତର ତାହାକୁ ॥
ଘଟଜଳରେ ଚନ୍ଦ୍ରବିମ୍ବ ପରିପ୍ରାୟେ ଘେନାଦେନ ଅନୁଭବୀ ।
ଘଡ଼ି ଅର୍ଦ୍ଧକେ ତେଡ଼େ ଭାଗ ଭୁଞ୍ଜିଲ ଯେସନେ ପର୍ଶି ମରବ । ୪ ।

ଉର୍ଦ୍ଧ୍ୱନିଶ୍ୱାସ ଛାଡ଼ି କୃଷ୍ଣ କହନ୍ତି କାନ୍ତା ବୋଲି ଅବା ଏମନ୍ତେ ।
ଅନ୍ତର କଲ ଏତେହିନେ ଗାଉଣୀ ଅଣଦେଖିଲା କରି ଚିତ୍ତେ ।
ଅମିଯୁକ୍ତର ଅଙ୍କରେ କପି ଦିଶେ ଉମାପତି କଣ୍ଠେ ବିଷ ।
ଅଙ୍ଗୀକାର କରି ମହନ୍ତ ନ ଛାଡ଼େ ହେଲେହେଁ କଳଙ୍କ ଦୋଷ ॥
ଏହି କଥା ଭାବ ଛାମୁରେ ହୁଗ ଭୁ କହନ୍ତୁ ବିନୟ କରି ।
ଅଙ୍ଗୁଳି ଅଧିକ ହେଲେହେଁ ଅଶୋଭା ହସ୍ତ ନୁହଇ ପରିହରି ॥
ଉରଗ ଶାବକ ପୋଷି ନ ବିନାଶି ଅନୁଗତଜନେ ବଧ ।
ଏଣି ପର କଲା କପାଁଇ କରନ୍ତୁ କଳଙ୍କ ଭୂଷଣେ ସଧ । ୫ ।

ଚତୁରବର-ଚଉତିଶ-ସ୍କନ୍ଧୁଣୀ ତୋ ଆଗେ ଗତୁରକଥା ।
ଚଣ୍ଡକର ଆଗେ ଖଦ୍ୟୋତ କରଣ ପ୍ରକାଶ କରିବା ଯଥା ॥
ଚାମୀକର ଦେଖ ଚନ୍ଦ୍ରଟ ଟଙ୍କଣ ପରଶ ଆଗେ କହିବା ।
ଚିନ୍ତାମଣି ଆଗେ ପରଶ ପ୍ରଶଂସା ଯେସନେ ନ ପାଇ ଶୋଭା ॥
ଚନ୍ଦ୍ରକୁ ଯେସନେ ଛାଡ଼ି ସିନ୍ଧୁ ମୀନ ଜଳଚର ସଙ୍ଗେ ଚିଣି ।
ଚେତନାହୀନେ ଅମ୍ଭେ ତୁମ୍ଭେ ହୁହିଁଙ୍କି ଗୋପସୁତା ସୁତ ମଣି ।

ଚତୁର୍ଦ୍ଦଶ ଲୋକେ ଯେଉଁ ଦୁହିଁଙ୍କର ଉପମା ଦେବାକୁ ନାହିଁ ।
ଚନ୍ଦ୍ରାବଳୀ ଶୁଆଳୀ ଗଉଡୁଣୀ ଅଟନ୍ତି ତା ଜାଣିଛୁଁ କାହିଁ । ୬ ।

ଛଇଳ ପ୍ରାଣ ପବନ ପନ୍ନଗ ତୋ ମାନ ଜାଣି କଲୁ ଯତ୍ନ ।
ଛେଳ ପୋଷିଲୁଟି ଜାଣିଲୁ ମାଳର ଫୁଲରେ ଶରଧା ନାହିଁ ।।
ଛପନକୋଟି ଜୀବଙ୍କର ଜୀବନ ପାଣି ପବନନ୍ତି ଜାଣି ।
କ୍ଷଣକେ ସୁପଥ ପଙ୍କିଳ ତ୍ରିବାର୍ଯ୍ୟ ନାଶ ଦୋଷ ନାହିଁ ଯେଣି ।
ଛ-ଦଶକଳା ସମ୍ପୂର୍ଣ୍ଣ ଚନ୍ଦ୍ର ଉଦେ ସକଳ ନେତ୍ରସମ୍ପତ୍ତି ।
କ୍ଷୀଣ ମଳୀନ ଦୋଷେ ନାହିଁ ନନ୍ଦବା ସଜନ ! ରଜନୀପତି ।
କ୍ଷଣେ କ୍ଷଣେ ସବୁ ସୁମନାମାନଙ୍କ ମନ ମୋହେ ମଧୁକର ।
ଛଡ଼ିଲୁ ଚମ୍ପା ଏହି ଦୋଷେ ନାହିଁ ରସିକ ନୁହେ ଭ୍ରମର । ୭ ।

ଜଳ ମୀନ ପ୍ରାୟେ ଏକାଙ୍ଗ ପୀରତି ଯାହା ଦେଖିଛୁ ସ୍ୱରୂପ ।
ଜୀବନତ୍ୟାଗୀ ମୀନ ଜଳ ଅନ୍ତରେ ଜଳର କି ଭୁରୁକ୍ଷେପ ।
ଜଳଜ ପଙ୍କ ଛାଡ଼ିଲେ ପ୍ରଫୁଲ୍ଲିତ ନୁହେ ପଦ୍ମବନ୍ଧୁ ଦେଖି ।
ଜୀବନଦାତା ଜୀବନଗ୍ରାହୀ ହେଲେ କେ ପାଶରେ ଜନ୍ତେ ରଖି ।
ଜୂଆକାର ଯେସନେ ପରଧନ ଲୋଭେ ସତନେ ହରାଇ ମୂଳ ।
ଯୁବତୀ ଷୋଳସହସ୍ର ମଧ୍ୟେ କୃଷ୍ଣ ତୋ ବିନୁ ଅତି ଆକୁଳ ।।
ଜାହ୍ନବୀ ଆଦି ନାନା ତୀର୍ଥଜଳର ନିକଟେ ଥାଇ ଚାତକ ।
ଜଳଦଜଳ ଟୋପିକ ଆଶା କରି ଅବିରତରେ ତୃଷିକ । ୮ ।

ଝାସଇ ଯେସନେ ପତଙ୍ଗ ପ୍ରଦୀପେ ସ୍ୱରୂପ ଦେଖି ଲୋଭନେ ।
ଝଳଇ ଚଉ ପରବଧୂ ସଙ୍ଗତେ ମହତ ହତ ଚେତନେ ।
ଝାଡକୂପେ ଯେସନେ ମିଥ୍ୟା ବାରବପେ ମୃଗରାଜ ମଲା ବୁଡ଼ି ।
ଝାଡ଼ମୃଗ ଯେସନେ ଶର ନ ଦେଖିଲା ଶ୍ରବଣ ଲାଳସେ ପଡ଼ି ।
ଝସ କୃଷ୍ଣରୁ ତୋ ଅଧରୁ ଆହାର କଟାକ୍ଷ କଣ୍ଟା ପୂରାଇ ।
ଝସକେତନ ହାତେ ଦେଲୁ ବିରହ ବଡ଼ଶୀ ଛଟିକା ନେଇ ।।

ଝରଇ ନେତ୍ର ସରସଦ୍ୱାରୁ ଯେତେକେ ଅଧିକ ପଢ଼ି ପାରିବେ ।
ଝିମିଟେଣ୍ଡି ଉତ୍ପ୍ରେକ୍ଷ ନ କରି ନାଶୁଛୁ ଟିଣ୍ଣା ଖଣ୍ଡ ପ୍ରାୟେ କରିବେ । ୯ ।

ଞାସି ନଦୀ ଞାଁ ନାଗ ନରେଶଙ୍କୁ ଞେତ୍ରରେ ଥିବ ଦେଖା ।
ଞିମିଷମାତ୍ରକେ ଉତ୍ପ୍ରେକ୍ଷ ଛାଡ଼ି ଏ ଞାଷ୍ଟପ୍ରାୟେ କରନ୍ତୁ ଉଚ୍ଚା ॥
ଞପୃନପ ତୁଳୀ ଦୁହେଁ ଦୁହିଁଙ୍କର ଞିକିଷାର୍ଥ ଦରଶନେ ।
ଞଷ୍ଟେ ଜାଣିଲ ଭୃମ୍ଭ ତାଙ୍କ ପୀରତି ଚନ୍ଦ୍ର ଚକୋର ଯେସନେ ॥
ଞିଷ୍ଠୁର ଞିର୍ଦ୍ଦୟ ନାରୀଙ୍କ ହୃଦୟ ପୁରୁଷବିଷାଦ ସୀମା ।
ନଳ, ରାବଣ, ବାଳି, ବାଣ, ରୁକ୍ମଣ, ଇନ୍ଦ୍ର, ଚନ୍ଦ୍ର, ବଶିଷ୍ଠ, ବ୍ରହ୍ମା ॥
ଞାରୀମାନେ କାହାକୁ କି ନ କଲେ ଯୁଦ୍ଧରେ ବାନ୍ଧିଲେ କୃଷ୍ଣା ।
ଞାଗ ନାଗର ନାରୀ ଯେତେକେ ସୁନ୍ଦର ଟେଡ଼ିକାହିଁ ଘରବୁଡ଼ା । ୧୦ ।

ଟାଣ କହୁଥାଉ ଅଟଳ ପଣରେ କ ଟଳିବ ଅମ୍ଭ ଚଉ ।
ଟିକାକେ ମାନ ମହତ୍ତ୍ୱ ପତିବ୍ରତ ଟାଳିବ ମନ୍ଦ୍ରିଲ ଗୀତ ।
ଟାଣ କର ଟେକିବା ଟେଁା ନାମ ଧରିବ ରକାର ଉଚ୍ଚାର ଶୁଣି ।
ଟଙ୍କଧରଧର ଅବଶେଷ ପଡ଼ୁଛୁ ଟୋପ ଟିକର ନ ଘଣି ॥
ଟଳଟଳ ହୋଇ ଟଳ ପଡ଼ୁଛନ୍ତି ଦେହରେ ଚେତନା ନାହିଁ ।
ଟିକାଏ ରେତ ମୁରଲୀହାତ ହେଲେ ହୃଦ ଯାଏ କଥା କାହିଁ ॥
ଟାଙ୍ଗଣା ମିଶାଇ ଝାଳ ଦେବା ଯାଏ ହେମକାମ ଏକଲ୍ଲନା ।
ଟେକ କହୁଥାନ୍ତି ନାଉସିଡ ଭାଇ ପାର ହେବା ଯାଏ ସିନା । ୧୧ ।

ଠକଣି ରେମଣି ରମଣୀମଣି ରୁ ଠାବ କଲ ପେହ୍ନବନୁ ।
ଠାଣ କୃଷ୍ଣକୁ ବୃନ୍ଦାବନେ ରମିଲୁ ରତିଶକ୍ତେ ଟଣ ତନୁ ॥
ଠେଁ ସି କହିଲୁ କେତକୀ କଣ୍ଟକ ଏ ଠିକ ନଖ-ରେଖ କୁଚେ ।
ଠୁଳେ ଲଜ କର ଲୁଗୃଇଲେ ଜକ ଧାଇବ ଜାତମ୍ଭ ଲୁଚେ ॥
ଠାକୁରାଣୀ ବଡ଼ ହେଲେହେଁ ଯାନ ରୁ ମୋ କୋହର ହେବା ଭଲ ।
ଠକକଥା ଏତେ କାହୁଁ ରୁ ଶିଖିଲୁ କାଳ ଧୂଳଖେଳାଉଳୀ ।

ଠାବେ ଠାବେ ତୋର ପାଦପଦ୍ମ ଚିହ୍ନ ବାଲିକୂଦରେ ଅନାଇଁ ।
ଠୂଳ ପ୍ରେମଭରେ ଅନଙ୍ଗଅଙ୍କୁରେ ଚୁମ୍ବନ ଦିଏ କଣ୍ଠାଇଁ । ୧୨ ।
ଡହ୍ଲକହେମାଙ୍ଗୀ କୃଷ୍ଣଚଉପାଶେ ତେଜ କୁଚକୁମ୍ଭ ଉଭା ।
ଡମରୁସନ୍ନ୍ମଧ୍ୟା ସ୍ଥୂଳନିତମ୍ବା ବସନ ଭୂଷଣେ ଶୋଭା ॥
ଢୋଳେ ମୃଗ-ମୀନ-ଖଞ୍ଜନ-ଗଞ୍ଜନା ଚକ୍ଷି ନ ପାଇଲେ ଚିତ୍ତ ।
ଢେଉଲୁ ଉର୍ପଞ୍ଜରୀ ମଧ୍ୟରେ ଯେ ପଡ଼ିଲା କୋକିଳ ମତ ॥
ଣାଳେ ଶୁଖିଲା ପଲ୍ଲବ ପ୍ରାୟେ ତନୁ ବିରହ ହୁତ ଅନଳ ।
ଣମନ୍ତୁଧର ସମ କରୁଁ ମଦନ ବହୁନାହିଁ ନେଣ୍ଟଜଳ ॥
ତେଜିଲୁ ଶ୍ରୁତି ଯାର ସଙ୍କେତସ୍ଥାନକୁ ତର ଗଢ଼ ପଶୁ ବନେ ।
ତଂଶିଲୁ ଅନଙ୍ଗ-ଉରଗ ଡାକିଲେ ଡାକ ନ ଶୁଣୁ ଶ୍ରବଣେ । ୧୩ ।
ଥଗଥମାଳ ସଙ୍ଗୀତ ଆଦ ରସ ଆରମ୍ଭ କରନ୍ତି ବାଳୀ ।
ଥାଳେ ଜଳ ନାହିଁ ସ୍ଥୂଳମୀନ ଘରେ ମଧୁରସ ଯେତେକ ଥାଳି ।
ଥୋକଇ ନାହିଁ ଦୃଷ୍ଟିକ ଶାମ୍ଭୁ ଯେ ଗଙ୍ଗାଦ୍ଧ ସ୍ୱପୂର୍ଣ୍ଣଜଳ ।
ଥାଳେ ସ୍ୱର୍ଣ୍ଣଜଳ ଅଙ୍ଗରେ ଅଶାୟୀ ମନୋରଥ ମୁକ୍ତାଫଳ ॥
ଥଳଦଳ ହୋଇ ତାଙ୍କନ୍ତେ ଲୋଚନ ପଡ଼ିଲା ପଦ୍ମନୟନେ ।
ଦାଳେ ବୋଧ କଥା ମଥା ଯେ ଜାଣଇ ଉଗ୍ର ବାତ ଅମ୍ଭେମାନେ ॥
ଦମ ପ୍ରାୟେ ମଣୁ ଏତେସବୁ ଶୁଣି ଟଳଇ ନାହିଁ ତୋ ମନ ।
ଦୋଉ ବଜାଇ କହୁଛୁ ମୋର ଦୋଷ ନାହିଁ ତୁ ଯେବେ ନ ଯେନ ।
ଧଣି ରୂଳାଅଂଶୁ ନାସାଯୁଟେ ଦେଲେ ଚଳାଚଳ ପକ୍ଷ ଦେଖି ।
ଧନ୍ୟ ନେତ୍ର ହୋଇ ଧାଇଁ ମୁଁ ଅଇଲି ମନ ତାଙ୍କ ପାଶେ ରଖି ।
ଅଣହେଲା ହେଲେ ଆଉ ନ ପାଇବି ଏବେ ତୁ ଚଳ ବହନ ।
ଅନଙ୍ଗବ୍ୟାଧିକ୍କ ଅମୋଘ ଔଷଧ ଅଧରସ୍ଥାନାଲିଙ୍ଗନ ॥
ଅନୁପାନ ସ୍ମୃତିଚନ୍ଦନ ତାହାଙ୍କ ଆନ ଉପାୟ ନ ଦେଖି ।
ଅଣି ଲଗାଅ ନାଟିକା ଉଦ୍ଧରସ ବଟିକା ଦେଇ ତେ ସଖୀ ।

ଅନେକ ବାଳା ବୈଦ୍ୟ ବସିଅଛନ୍ତି ନ ପାରିଲେ ସାଧି କରି ।
ଏଣଅଙ୍କ ଏକ ବିନୁ ଉଡୁଗଣେ କେ ପାରେ ତମିର ହରି । ୧୦ ।

ତୃଷା ତନୂତାପ ପାପ ହରଣକୁ ତନଧାର ଜନପୂରରେ ।
ତହୁଁ ଥାଇ ରାଜହଂସ ମନ ଯେସନ୍ତେ ମାନସରୋବର ଠାରେ ।
ତରଳମତି ଭୃଙ୍ଗ ସବୁ ପୁଷ୍ପରେ କ୍ଷଣେ କ୍ଷଣେ ମନ ବୋଧେ ।
ତୀକ୍ଷ୍ଣଦାଢ଼ ଥାଉଁ ବନ୍ଦୀ ପଡ଼ଇ ସେ ପଦ୍ମିନୀ ପ୍ରେମ ଉପ୍ରୋଧେ ॥
ତିଳଫୁଲ ପ୍ରାୟେ ସ୍ନେହ ଜାଣିଥିଲି ତନୁ ଅନ୍ତରେଣ ଥିବ ।
ତୃଣ ତୁଷାର ସଙ୍ଗ ପ୍ରାୟେ କେ ଜାଣେ ରବି ଉଦୟରେ ଯିବ ।
ତେତେକେ ମହାରାଜ ସମ୍ପଦରେ ରାମ ହିଁ ଘସ୍ରୁ ରାମା ନ କଲେ ।
ତହୁଁ ଅଧିକ ତୋର ବ୍ରତେ ବ୍ରଜକ ଗୋବିନ୍ଦ ଗୋପୀମଣ୍ଡଳେ ।୧୧।

ଥରେ ଚମ୍ପଫୁଲ ଚୁମ୍ବିଲେ ଭ୍ରମର ଥୟ କରି ତା ନ ସେନ ।
ଥିଲି ଯେ ହେମପ୍ରତିମା ରାମ ପାଶେ ସେ କି ସୀତା ସପତ୍ନୀ ।
ଥାଣୁର ଉମା ବାହ୍ୟଯ୍ୟ ଅର୍ଦ୍ଧଅଙ୍ଗ ଥାଇ ବ୍ରହ୍ମରାଗେ ମନ ।
ଥୟ କଲି କୃଷ୍ଣ ବାହାର ଅନ୍ତରେ ତୋର ରୂପ ଲାୟେ ଲୀନ ॥
ଥୂଅ ଘୃତ ସଙ୍ଗେ କ୍ଷୀର ଥାଇ ଯେସନ୍ତେ ତମ ପ୍ରଦୀପ ପଛରେ ।
ଥାଇ କଜ୍ଜ୍ୱଳ ସବୁ ବାମା ନୟନେ ସ୍ଥିତ ଶିଖି ଶିଖା ସରେ ॥
ଥିବ କି ନାହିଁ ମନରୁ ପାଶୋରିଲୁ ଥିଲୁ ରସି ବିପରୀତେ ।
ସ୍ଥକିତ ହେଲୁ ଗବାକ୍ଷମାର୍ଗେ ରହିଁ କୃଷ୍ଣ ସୁବଳ ସଙ୍ଗତେ । ୧୨ ।

ଦାଣ୍ଡରେ ଦେଖୁ ପୁଣି ଦେଖୁ ସଲଙ୍କେ ଦୁଇ ରୂପ ଏକ ଦେହ ।
ଦମ୍ଭିନୀ ହୋଇ ସନ୍ଦେହିଲୁ କୃଷ୍ଣକୁ ଏ କି ଅଲୌକିକ କହ ॥
ଦରହସିତେ କୃଷ୍ଣ ବୋଲେ ସୁବଳ ଇଚ୍ଛାବଳି ମୋର ଭେଟ ।
ଦର୍ଶନ ଦେଲି ତା ଇଚ୍ଛାରୁ ପ୍ରକଟି ଦାଣ୍ଡରେ ଦେଖ ପ୍ରକଟ ॥
ଦ ଇବେ ଦୁର୍ଗମ୍ୟ ଚିତ୍ତଙ୍କ ଅଗୋଚର ମୁଁ ଥାଇଁ ତୋ ସ୍ନେହ ସଙ୍ଗେ ।
ଦୁଧ ଦେବାକୁ ଯଶୋଦା ଇଚ୍ଛା କଲେ ଅଛ ମୁଁ ତାହାଙ୍କ କୋଡ଼େ ॥

ଦଧି ସର ଲହୁଣି ଚୋରାଇ ଖାଇବେ ଦକା କଲା ବୃନ୍ଦା ମନେ ।
ଦକାରୁ ପ୍ରକାଶି ଦଧି ଖାଉଛୁ ମୁଁ ଦେଖ ଯା ତାର ଭୁବନେ । ୧୮ ।
ଧରି ନ ପାରନ୍ତି ଦସ୍ୟୁଙ୍କୁ ଭସ୍ମାନ୍ତୁ ଧାତା ଧର୍ମି କର୍ମିମାନେ ।
ଧାଇଁ ମନୋରଥ ଦେଇ ମୁଁ ଅପରି ଧରି ନ ପାରଇଁ ତେଣେ ।
ଧାଉକାରେ ଯାଇଁ ଆଶ୍ରାପଇଁ ଯେସନେ ସ୍ୱରୂପ ରୂପ ମୁକୁରେ ।
ଧ୍ରୁବ ଜାଣ ତୋର ଶବ୍ଦ ମୋର ଅନ ନାହିଁ ଯେହ୍ନ ପରକାରେ ।।
ଧଇର୍ଯ୍ୟ ଧର ସଖି ଦୂର କର ଯେଉଁ ସୁଖ ଜାତ କଲ୍ଲ ।
ଧୋଇଲା ମାଦ୍ଧୁନ୍ତ କରଣୀ ସବୁ ପୁଣି ଧୂଳି ମଣ୍ଡି ହେଲ୍ଲ ।
ଧନ୍ୟ ରେ ଧନ୍ୟ ତ୍ରିଭୁବନେ ଅଛୁ ତୁ ଏକ କହିବା ଅମ୍ଭର ।
ଧାତା ଧୂର୍ଜଟି ଧ୍ୟାନେ ଯେ ଅଗୋଚର ସେ ଧନ କରୁଛୁ ତୋର । ୧୯ ।
ନାଗର ପଦ୍ମେ ଯେତେ ଓଁକାରଲେ ତେତେ ହେଁ ଯାଉଛୁ ଦୂର ।
ନାଏ ପ୍ରାଣ ଶର ଧନୁ ଯେତେ ନୁଏଁ ନାଶଏ ସେହ୍ନ ପ୍ରକାର ।
ନରେନ୍ଦ୍ର ପ୍ରାୟେ ଅନୁଗ୍ରହ ନଗ୍ରହ ଅଧିକ ତୋର ସୁଦଶା ।
ନୟନ ଶୋଭା ହେମ ଲେହ୍ନ ଚନ୍ଦରେ ନୁହଇଁ ବିପଦ ଦଶା ।
ନଦୀନ ଜ୍ୱରନାଡ଼ୀ ତୁ ଅଛୁ ନାଶ ଛଡ଼ି ଛଡ଼ାଇବୁ ପ୍ରାଣ ।
ନଳ ଶଯ୍ୟା ଛଡ଼ି ଅବନୀଶଯ୍ୟନ ଗଙ୍ଗଶିଉଳୀ ଯେସନ ।
ନବଅଙ୍କୁର ରବି କରେ ଶୁଖିଲେ କି କରିବ ଘନରସ ।
ନଦୀସ୍ରୋତରେ ଭସିଗଲା ଜୀବାରେ ନାବେ ପ୍ରୟୋଜନ କିସ । ୨୦ ।
ପୀରତପଥେ ପାଦ ଦେଲେ ପ୍ରମାଦ ପରମାନନ୍ଦ ସମାନ ।
ପ୍ରଥମ ପାବକେ ରେଣୁ କରି ଶେଷେ ପ୍ରତିଷ୍ଠା ମହତପଣ ।।
ପିତା ପତି କୁଳ ଲାଜ ଲଙ୍ଘି ଯାଇ ଉଚ୍ଛିଷ୍ଟପତର ମତ ।
ପାଣ୍ଡୁର ପଶାଖେଳ ପ୍ରାୟେ ହାରନ୍ତି ନିଜ ସମ୍ପଦ ସହିତ ।।
ପରପୁଷ ସଙ୍ଗେ ପରପୁଷୀ ଯେସନ୍ତେ ପାଉଁଶ କରଇ ଦେହ ।
ପିଣ୍ଡ ପ୍ରାଣ ପୃଥ୍ୱୀ ପ୍ରତିଷ୍ଠା ଲେଉଟିଲେ ସେ କପାଳ କରେ ସେନେହ ।।

ପୀଠେ ପ୍ରତିପାଳି କର କାମିନୀ ଉପକାନ୍ତ କୋଳେ ନାହିଁ ।
ପ୍ରଥମା ଦ୍ୱିତୀୟା ଶଶୀ ଅଦରଶା ତୃତୀୟା ଦଶକୁ ନାହିଁ ।୨୧।

ଫଣୀମଣିଧର ଦକ୍ଷିଣାବର୍ତ୍ତ କି ଶଙ୍ଖ କୋଟିକରେ ଏକ ।
ପାଇ ରୂପବନ୍ତ ଗୁଣଜ୍ଞ ଯୁବତୀ ଅନେକ ଦୁର୍ଲ୍ଲଭେ ଏକ ॥
ଫଳ ମହାକାଳ ସୁରଙ୍ଗ ଖାଇକି କଲେହେଁ ଉପାସ ଛନ୍ନ ।
ଫୁଲଶିମିଳୀ ପଦ୍ମାକାର ସୁନ୍ଦର ତା ନକ ମଥାରେ ଘେନ ॥
ଫଳ ପୂର୍ଣ୍ଣ କଣ୍ଠ ଟାଣ ଗୁଣେ ଧନୁ ନାୟକ ପାୟିକ ବେନ ।
ଫାଟି ଫୁଟି ଅସି ପୁଣି ଗୁଣେ ବହି ହେବେ ସେ ଧନୁକ ଧନୀ ।
ଫୁଲ୍ଲିଲେ ମଲ୍ଲିକ ମୁକୁର ଯେସନେ ଫୁଲ୍ଲ ନାଗରୀଙ୍କ ବକ୍ତ୍ର ।
ଫେରାଇଲେ ପିଠି ପ୍ରୀତି ପ୍ରତିବନ୍ଧ କୋଳ କଲେ ବିପରୀତ ।୨୨।

ବୀଜରୁ ବୃକ୍ଷ ବୃକ୍ଷରୁ ବୀଜ ଯେସନ୍ତେ ବେଦରୁ ବ୍ରହ୍ମ ବ୍ରହ୍ମୁ ବେଦ ।
ବାରିରୁ ବାରିଧି ବାରିଧିରୁ ବାରି ବେନିରୂପ ଏକଭେଦ ॥
ବନ୍ଧୁ ବିଭବନ୍ତ ବିଭବନ୍ତ ବନ୍ଧୁ ବେନି ସଂଯୋଗରେ ଶୋଭେ ।
ବାହାର କରେ କେ ଅଧମ ସୁବର୍ଣ୍ଣ ଶାଳଗ୍ରାମ ଗର୍ଭୁ ଲୋଭେ ॥
ବିପ୍ରପାଦଚିହ୍ନ ପ୍ରାୟେ ବନମାଳୀ ଅଙ୍ଗଜ କରନ୍ତୁ ତୋତେ ।
ବିଶ୍ୱନାଥ ଅର୍ଦ୍ଧାଙ୍ଗରୁ ଅମ୍ବିକା ଅନ୍ତର କଲା ପ୍ରଶନ୍ତେ ॥
ବଜ୍ର ଶର୍ଣ୍ଣାରୁ ପ୍ରଖର ଖଳବାଣୀ ବୁଝିଲି ମୁଁ ବର୍ତ୍ତମାନେ ।
ଜାର ବେନି ଖଣ୍ଡ ଛାଇକି ଛଖଣ୍ଡ କରନ୍ତୁ ବଚନବାଣେ ।୨୩।

ଭଲ ମନ୍ଦ ଭାଷା ନ ବୁଝି କର ଯେ ଭଲଲୋକ ବୋଲାଉଛ ।
ଭବ ନନ୍ଦା କରି ଭବାନୀ ଅଗ୍ରତେ ବ୍ରହ୍ମାହିଁ ନାଶ ପାଇଛ ॥
ଭବ ଅଭାବ କଲ ଲୋକ ଲାଭ ଗୋ ବୁଝ ତୋହର ସମ୍ମୁଖେ ।
ଭାବ ଅଛେ ଯତ୍ନେ ଅଭାବ କଲାକୁ ଭସ୍ମ ଟି ମୁକୁର ମୁଖେ ॥
ଭଲା କଲା ସେ ପ୍ରମଦା ମୁଁ ହେଲା ମାନ ଅନଳେ ସଂଯୋଗ ।
ଭଣେ ଭୂପତି ଭୁଜ୍ଞାରସ ଅନ୍ତରେ ଅଛି ସ୍ୱାଦୁ ସୁଖଭୋଗ ॥

ଭାଇ ବୋଲ ଚନ୍ଦ୍ର କବଣେ କମଳା ନାରାୟଣ ସଙ୍ଗ ଘଟେ ।
ଭାଗେ ପଡ଼ିଛୁ ତୋହର ସୁଧାକର ଭୋଗ ଭଗବାନ କୋଟେ ।୧୪
ମୁଣ୍ଡ ଲଗାଇ ଚରଣ ଛୁଇଁ ଦୂତ ନମସ୍କାର କରି କହିଲା ।
ମୂରଲୀଧର ଆତୁର ଏତେ ମୋତେ ତୁମ୍ଭ ପାଦ ଛୁଁଆଇଲା ॥
ମୂର୍ଚ୍ଛିତ ଦଶାନନର ଶକ୍ତିଘାତେ ଲକ୍ଷ୍ମଣ ହେତ ଯେସନ ।
ମାନନୀ ରମଣୀ ମୃତସଞ୍ଜିବନୀ ମିଳିଲେ ବଞ୍ଚେ ଜୀବନ ॥
ମୋର ଯିବାଯାଏ ଜୀବନ ଅବଧି ମିଛ ନୋହେ ସତ ବାର ।
ମାନ ଛାଡ଼ ମଣିଚୂଡ଼ମୋକ୍ଷଣକୁ ମାତ୍ର ମୁହିଁ ରକ୍ଷାକର ॥
ମଇବନ୍ଦ୍ରୀ ହୁରିତ ନାକ କୋଦେ ବନାନଳ ବାରୁଦହେ ।
ମଣିମା ଶୁଣିମା ବୃଷଭାନୁଜମା ନ ପଡ଼ ମଦନଦ୍ରୋହେ । ୧୫ ।
ଯଶୋଦାସୁତ ଅଗ୍ରଜ ସଖାବୃନ୍ଦ ଯାର ଛିମିସୁତମଗଣ ।
ଜଗଜ୍ଜୀବନ ସଙ୍ଗତେ ଜୀବ ଯିବ ତା ଦୁଃଖ ଦେଜ ନ ଦେଜ ॥
ଜ୍ଞାଣ ଶିରୋମଣି ରମଣୀମଣି ତୁ ଜାଣୁ ସବୁ ରସକଳା ।
ଯୋଗୀନ୍ଦ୍ରଙ୍କ ଗଲଣାନ୍ଦେଖି ଦୋଷ ମରଣକୁ ବଳିଗଲା ।
ଜମ୍ବୁ ସଙ୍କେତ କୁଞ୍ଜଯମୁନାଜେ ଦୂତୀ ଦ୍ରାବ ଦର୍ଶନ କଲା ।
ଜଳ ସଙ୍କଟୁ ବ୍ରହ୍ମକାଣ୍ଡ ହ୍ରାସ କ ଛଟେ ନେ ୯ଠକ ଦେଲା ।
ଯନ୍ତ୍ର ମନ୍ତ୍ରମଣି ମୂଳକା ନ ମଣି ଯୁଚାନ୍ଦ୍ରକଙ୍ଗୀର ବଷ ।
ଯତନେ ଜବରେ ସିଞ୍ଚ ଶାନ୍ତ କଲା ଦୂତୀ ବଚନପୀୟୂଷ । ୧୬ ।
ରୋଷ ସଙ୍ଗେ ଜର୍ଜ୍ଜରିନଶ୍ୱାସ ଘନ୍ଦ୍ରଣ ବଥା ମୁଖ ଟେକି କହେ ।
ଜଉରସ ଅଶାଭଗ୍ନ କ୍ରୋଧାନଳେ ଦହିକା ହୃଦୟ ଦହେ ॥
ରହୁ ଚିନ୍ତାମଣି ପ୍ରଣୟକୋପ ରଙ୍କ ନ ଦେଇ କହିବୁ ତୋଷ ।
ରାକାଚନ୍ଦ୍ର ବଦନେ କ ସମ୍ଭବୁ ସୁଧାକର ଯହୁଁ ବିଷ ॥
କୁଆଇଁ କୋରସତ ସଜା ଭଣଲ୍ଲା ଆପଣା କହି କେ ଜାଣେ ।
ରଙ୍କ ପୁରୁଣାରୁ ତାଙ୍କ ଦେଇଣ ଯେସନ ରତନ କିଣେ ॥
ରତପଣ ତାପ ପାପକଳଙ୍କେ ସେ ସର୍ବାଙ୍ଗ କଳା ହୋଇଲା ।
ରାଗ ହୃଦରୁ ବାହାର ନୋହେ ଅନ୍ତେ କର ରଙ୍ଗଣେ ରହିଲା । ୧୭ ।

ଲକ୍ଷେକ କହିଲେ ଏକ ଷଣ୍ଢ ନୋହେ ସେ ଲୁଗାଙ୍କେର ବଚନ ।
ଲାଜ ଥିଲା ଲୋକ ମାଧବ ହେବ କି ଏହା ବିଚାରୁଛୁ ମନ ।
ଲଘୁଭ ସବୁ ନିର୍ଯ୍ୟସ ମିଛ ତାର ଡାହାଣ ହାତହୁଁ ମିଛ ।
ଲମ୍ପଟ କପଟ କଥାହିଁ ନ ଘଟେ କୁଁ ଅଭ ବାମା ଶ୍ରୀବତ୍ସ ॥
ଲତାପତ୍ରେତ ଦନେ ମୋତେ ରଖି ସେ ଯାଉଛି ଚୋରି ନଇଲା ।
ଲାଗେ ଲାଗେ ପଞ୍ଚଶର ପଞ୍ଚଶରେ ପାଞ୍ଚ ପାଞ୍ଚ ଶୂନ୍ୟ ଦେଲା ।
ଲକ୍ଷୁଣିବେଣି ହଭି ଅଶାସ୍ତ୍ରୀ ମୁଁ ଲୋଟଭି ଭଡ଼ିଲ ତମାଳ ।
ଲଜ୍ୟେ ଥଏ କଲ ଘନଶ୍ୟାମ ନୋହେ ବିଚିତ୍ରୀ ଘନଶ୍ୟାମଳ । ୨୮
ବିଧୂମୁଖୀ ଚୁହିଁ ତ୍ରୀଡ଼ାଭର ହୋଇ ବୃଷଭଲେ ମୁଁ ଅବଶ ।
ବଧ କୋଟିବାର କଲା ପ୍ରାୟେ କଲା ବନିତାଙ୍କ ବଧୂହାସ ।
ବସନ ପାଲଟ ସମଭଗ୍ନୀ ଭେଟ ବାଞ୍ଛାଲତା ପକାଗରୁ ।
ବରଲତା ବନପଲ୍ଲବ ବଲ୍ଲଭ ବଟେ ପଥ ଅନୁସରୁ ॥
ବିରହ ତପ୍ତ ଅନଳେ ପଡ଼ିଲି ମୁଁ କା ଆଗେ କହିବ କସ ।
ବିଟପ ପୁରୁଷ ଦେଉତେସେ ଆଶ ପୋଡ଼ୁ ମୋ ବୟସ ବେଶ ॥
ବୃନ୍ଦାବନେ ଆଜ ଘଣେହେଁ ନ ଥିବ ଗୋପ ଛାଡ଼ି ଯିବି କେଣେ ।
ବନମାଳୀ ନାମ ରୂପ ଗୁଣ କାନ୍ତି ପ୍ରସଙ୍ଗ ନ ଶୁଣି ଯେଣେ । ୨୯ ।
ଶୋକମୁଗ ହୋଇ ରାଧା ଏହା କହି ସ୍ୱର ଛଇ କଲା କୋହେ ।
ସେନେହ-ସିନ୍ଧୁ-ତରଙ୍ଗ ମାନ-ବାନ୍ଧବନ୍ଧରେ ସମ୍ଭାଳ ନୋହେ ।
ସହି ନ ପାରି ସୁକୁମାରୀ କୁମାରୀ ଶୋକାକୁଳେ ମୋହି ଗଲା ।
ସହଚରୀ ସଙ୍ଗେ ଦୂତିକା ଅନେକ ଯତନେ ସଚେତ କଲା ।
ସଜ ସୁବ ସିତ କୁବଳଏ ଦଳ ଆଣି କଣ୍ଠେ ଲମ୍ବାଇଲେ ।
ଶକ୍ରଗୃହ ଘନ ବିଦ୍ୟୁଲତାମାନ କ ଶୋଭା ଦେଖ ହୋଇଲେ ।
ସଘନ ତମାଳ ପର୍ଯ୍ୟସ୍ତ ଜଳ ତୁଙ୍ଗ ଇନ୍ଦୀବରମାଳା ।
ସଖି ହଠ ଦେନ ସିନ୍ଧ ସୁପ୍ରତନୀ ସନ୍ତୁଖେ ସଖୀ ଶ୍ୟାମଳା । ୩୦ ।
ଶ୍ୟାମଳାଙ୍କୁ ଚୁହିଁ ସ୍ନେହଭର ହୋଇ ଅଙ୍ଗ ପୁଲକେ ପୂରିଲା ।
ସୁଅଳଙ୍ଗନ ସୁଥମୋଦ ବଚନ ଅଧର ଆସ୍ୱାଦ କଲା ॥

ଶରଦରାକା ରଜନୀକର ସ୍ୱହେଁ ରାଧା ଦୂତୀଙ୍କି ଡାକିଲେ ।
ଶୁକ୍ଳଅଭିସାର ସଜନୋଚିତ କର ନେବାନ୍ତରେ ଆଜ୍ଞା ଦେଲେ ॥
ଶ୍ୱେତବସନ ସରୁ ଶ୍ୱେତଭୂଷଣ ସମୂହ ଶ୍ୱେତସୁମନ ।
ଶ୍ରୀଖଣ୍ଡଚନ୍ଦନ ଚନ୍ଦ୍ରମା ସହିତେ ସର୍ବାଙ୍ଗେ କଲେ ଲେପନ ।
ଶ୍ରୀ ଗଜପତି ଭୂପତି କହିଁ ରସସିଦ୍ଧି ବଷହେଁ ସଙ୍ଗମେ ।
ସାନନ୍ଦେ ଦୂତୀ ଘେନି ପ୍ରିୟଯୁବତୀ କୃଷ୍ଣଙ୍କୁ ହସି ପ୍ରଣାମେ । ୩୧ ।
ଶ୍ରୀରାଧା କୃଷ୍ଣ ସଙ୍କେତ ଦେଖି ରସ ସଂସାରେ ଉପମା ନାହିଁ ।
ଶତେ ଅଂଶେ ଲକ୍ଷ୍ମୀ ନାରାୟଣ ହେଲେ ସେ ସୁଖ ଲଭିବେ କାହିଁ ॥



ଷେବା ଶିବ ବ୍ରହ୍ମା ବ୍ରାହ୍ମଣୀ ଅନେକ ଶଚୀ ଇନ୍ଦ୍ର ରତି କାମ ।
ଷ୍ୟାମା ଶ୍ୟାମବନ୍ଧୁ ରହିଛି ଖଚିତ ବାଳକେ କେ ସରସମ ॥
ସୁଖନନ୍ଦୀ ସିନ୍ଧୁ ସଙ୍ଗମ ଅଭେଦ ସମାନ ଦେବାରେ ମନ ।
ସ୍ନେହକଳ୍ପଲତା ସ୍ନେହକଳ୍ପତରୁ ଦୁହେଁ ଦୁହିଁଙ୍କି ସମାନ ।
ସନ୍ତୁଷ୍ଟ କାମଦା [illegible] ସନ୍ତୁଷ୍ଟହେଁ ରାଧାଙ୍କର ।
ଶୂନ୍ୟ ରେଚ ରୂପେ ଦୂତୀ ଧାଆଁରେ ଶୂନ୍ୟଦେହ ଲତାନ୍ତର । ୩୬ ॥
ହେମାଙ୍ଗୀ ଚରୁଣୀ ଚେତନାରୁ କର ଧରି ସଙ୍ଗତେ ବାହାର ।
ହେଜଲେ ଦେହ ହୋଇବ ସେହିପରି ହୃଦହାର ଗୋବନ୍ଦର ॥
ହୁତାଶନ ପ୍ରାପ୍ତ ହରିଙ୍କି ମଣ ତୁ ଭବ ବନ୍ଧନୁ ଉଦତ ।
ହିରଣ୍ୟସୁତ ଅଭଗ୍ନି ସୂତଙ୍କର ଧ୍ରୁମ୍ର ମନରୁ ସମ୍ଭୂତ ॥
ହେକ ନ ଅଣୁ ଭୂମିରେ ଖୋଜା ରୁ ନାକଟେ ପଦ୍ମବ ଝର ।
ହୋଇ ତୃଷାକୁଳ ଗିରି ଶିଖ ଖୋଜ କେ ପାନ କରନ୍ତି ନୀର ।
ହେଲେ ନମ୍ରତା ବନସ୍ତୃଣବ ଭକ୍ତି ହତଗର୍ବ ସର୍ବହିତ ।
ହର ହୃଦ ପରହର ହରି ଆସି ହୋଇବେ ତୋହର ମିତ । ୩୭ ॥
କ୍ଷୁଦ୍ରଇ ଗୁଣ ଠ ଣ ଧନୁ ଟଧରୁ ଛନ୍ଦ ନୁଆଇବାବେଳେ ।
କ୍ଷତ ଶାମ୍ବ କପଙ୍କ ପାନ ସହିତେ ନରେନ୍ଦ୍ର ମୁଖ କମଳେ ॥
କ୍ଷତ କର୍କଶ ହୃଦ କର କୋମଳ ପ୍ରେମଅଙ୍କୁର ପ୍ରକାଶୁ ।
କ୍ଷଚ୍ଛନ୍ଦ ମନକୁ ମୁକୁର ମଣ ତୁ ହରି-ପ୍ରତିବିମ୍ବ ଦଶୁ ॥
କ୍ଷତ ଧର ତୁ ଅସାଧୁ ସାଧୁସଙ୍ଗ ଗରଳ ଅମୃତଭୋଗ ।
କ୍ଷୁଦ୍ରଇ ବଢଇ ଶଶୀ ଶ୍ୟାମ ଶ୍ୱେତପକ୍ଷରେ ହେଲେ ସଂଯୋଗ ।
କ୍ଷଇ ଯେମନ୍ତ ଯେମନ୍ତକୁ ତେମନ୍ତ କ୍ଷମାନିଧି ସେହିରୂପ ।
କ୍ଷଣକେ ଭକତ ଭୂମି ଦାନ ଦ୍ୟନ୍ତି କୃପା କଲେ ଭକ୍ତରୂପ । ୩୮ ।

ସମାପ୍ତ ।

କଟକ—ଓଡ଼ିଶା କୋହେନୂର ପ୍ରେସରେ ଏସ୍. ଅମିନୁଲ ଆଇ୍ଙ୍କ
ଦ୍ୱାରା ମୁଦ୍ରିତ । ୧୯୨୯.